# ଦେଶ ବିଦେଶର ଜୀବଜନ୍ତୁ

## ସୂଚନା

ଦେଶ ବିଦେଶର ବାରଟି ଜୀବଜନ୍ତୁଙ୍କୁ ନେଇ ଏ ଲେଖା । ଜୀବଜଗତର ବୈଚିତ୍ର୍ୟ ଓ ସୌନ୍ଦର୍ଯ୍ୟ ବିଷୟରେ ପିଲାମାନଙ୍କୁ କିଛିଟା ଧାରଣା ଦେବା ଏ ଲେଖାର ଉଦ୍ଦେଶ୍ୟ । ମଣିଷ ନିଜ ସ୍ୱାର୍ଥ ସାଧନ ପାଇଁ ବହୁ ସଂଖ୍ୟାରେ ବିଭିନ୍ନ ଜୀବଜନ୍ତୁଙ୍କୁ ଶିକାର କରିଆସୁଛି । ଫଳରେ ଅନେକ ଜୀବଜନ୍ତୁ ପୃଥିବୀପୃଷ୍ଠରୁ ସଂପୂର୍ଣ୍ଣ ରୂପେ ଲୋପ ହୋଇଗଲେଣି । ଆଉ କେତେକ ପ୍ରାୟ ଲୋପ ହେବା ଉପରେ । ଏହା ଆମ ପାଇଁ ଓ ଆମ ପରିବେଶ ପାଇଁ ବହୁ ସମସ୍ୟା ସୃଷ୍ଟି କରିଛି । ଆମେ ସମସ୍ତେ ଏ ବିଷୟରେ ସଚେତନ ହେବା ଉଚିତ । ଆମ ମନରେ ଓ ପିଲାଙ୍କ ମନରେ ଜୀବଜନ୍ତୁଙ୍କ ପ୍ରତି ସହାନୁଭୂତି ଜାତ ହେଉ । ତା'ହେଲେ ଆମ ଭବିଷ୍ୟତରେ ଏ ଧରଣର ସମସ୍ୟା ସୃଷ୍ଟି ହେବ ନାହିଁ ।

## ସୂଚୀ




ପ୍ରକାଶକ

ବିଦ୍ୟାଭାରତୀ

ଆଲାମଚାନ୍ଦବଜାର, କଟକ ୭୫୩୦୦୨

ନୂତନ ସଂସ୍କରଣ ୧୯୯୭

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ

ଚିତ୍ର : ସୁନାମଣି ସାମଲ

ଲିପିସଂଯୋଜନ : ବିଦ୍ୟାଶ୍ରୀ ଡିଟିପି ସେଣ୍ଟର, କଟକ ୭୫୩୦୦୨

ମୁଦ୍ରଣ : ରେନ୍‌ବୋ ଅଫ୍‌ସେଟ୍ ପ୍ରାଇଭେଟ୍ ଲିମିଟେଡ୍, ଭୁବନେଶ୍ୱର

ମୂଲ୍ୟ ଟ ୧୨.୦୦






## ଦେଶବିଦେଶର

# ଜୀବଜନ୍ତୁ

ଡକ୍ଟର ଅମୂଲ୍ୟକୁମାର ପଣ୍ଡା

ପୂର୍ବତନ ପ୍ରାଣିବିଜ୍ଞାନ ପ୍ରଫେସର୍

ରେଭେନ୍ସା କଲେଜ, କଟକ

ବିଦ୍ୟାଭାରତୀ ।। କଟକ






# ସିଂହ (LION)

ପଶୁମାନଙ୍କର ରାଜା ବା ଜଙ୍ଗଲର ରାଜା ଭାବେ ସିଂହ ସୁପରିଚିତ । ବର୍ତ୍ତମାନ ଆମ ଦେଶରେ ଗୁଜରାଟର ଗିର୍ ଜଙ୍ଗଲରେ ହିଁ ସିଂହ ଦେଖାଯାଆନ୍ତି । କିନ୍ତୁ ବହୁ ବର୍ଷ ପୂର୍ବେ ଏମାନେ ଦେଶର ପ୍ରାୟ ସବୁ ଅଞ୍ଚଳରେ ରହୁଥିଲେ । ସିଂହ ଘଞ୍ଚ ଜଙ୍ଗଲ ପସନ୍ଦ କରେ ନାହିଁ । ସେ ଖୋଲା ଓ ସମତଳ ଅଞ୍ଚଳରେ ବାସ କରେ । ଆମ ଦେଶ ଛଡ଼ା ଆଫ୍ରିକାରେ ମଧ୍ୟ ସିଂହ ଦେଖାଯାଆନ୍ତି । ସିଂହକୁ ଜଙ୍ଗଲର ରାଜା ବୋଲି କୁହାଯାଏ । ତଥାପି, ସିଂହ ଓ ବାଘ ଲଢ଼େଇରେ ସାଧାରଣତଃ ସିଂହ ହିଁ ହାର ମାନିଥାଏ ।

ଜଙ୍ଗଲର ଅନ୍ୟ କେତେକ ଛୋଟବଡ଼ ତୃଣଭୋଜୀ ଜନ୍ତୁମାନଙ୍କୁ ସିଂହ ଖାଏ । ସଞ୍ଜବେଳ ସିଂହପାଇଁ ଶିକାରର ଠିକ୍ ସମୟ । ଅଣ୍ଡିରା ସିଂହ ନିଜେ କ୍ୱଚିତ୍ ଶିକାର କରେ । ସେ ଅନ୍ୟ ଜୀବଜନ୍ତୁଙ୍କୁ ଘଉଡ଼ାଇ ମାଈ ସିଂହ ପାଖକୁ ଆଣେ । ମୁଖ୍ୟତଃ ମାଈ ସିଂହ ହିଁ ଶିକାର କରିଥାଏ । ରୋଗରେ ପଡ଼ି ବା ଅନ୍ୟ କାରଣରୁ ସିଂହ ଥରେ ଥରେ ମଣିଷଖିଆ ହୋଇଯାଏ । ନିଜ ଅଞ୍ଚଳ ଓ ନିଜ "ପତ୍ନୀ" ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ସିଂହ ନିଜ ଅଞ୍ଚଳରେ ଖୁବ୍ ଜୋର୍‌ରେ ଗର୍ଜ୍ଜନ କରିଥାଏ । ମଣିଷଖିଆ ସିଂହ ଖୁବ୍ ବିପଜ୍ଜନକ । ସେ ଏ ଅବସ୍ଥାରେ କାହାରିକୁ ଡରେ ନାହିଁ ।

ପ୍ରାୟ ଚାରିମାସ ମା' ପେଟରେ ରହିବା ପରେ ଥରକେ ଦୁଇ ତିନୋଟି ଛୁଆ ଜନ୍ମ ହୋଇଥାନ୍ତି । ଏମାନେ ସାଧାରଣତଃ ଜାନୁୟାରୀରୁ ଫେବୃୟାରୀ ମାସରେ ଜନ୍ମ ହୋଇଥାନ୍ତି । ଜନ୍ମ ହେବାବେଳେ ଏମାନେ ଅନ୍ଧ । ଏମାନଙ୍କ ଦେହରେ ଛୋଟ ଛୋଟ ଚିହ୍ନ ଥାଏ । କିନ୍ତୁ ପରେ ତାହା ଲିଭିଯାଏ । ଅଣ୍ଡିରା ସିଂହ ଚାରିପଟେ ଥିବା କେଶଗୁଚ୍ଛକୁ କେଶର କୁହାଯାଏ ।

ନିଜ ଲାଙ୍ଗୁଡ଼କୁ ଆସ୍ତେ ଆସ୍ତେ ତଥା ମଝିରେ ମଝିରେ ହଠାତ୍ ଖୁବ୍ ଜୋର୍‌ରେ ହଲାଇ ମା' ନିଜ ଛୁଆଙ୍କ ସଙ୍ଗେ ଖେଳେ । ଛୁଆମାନେ ମଧ୍ୟ ହଠାତ୍ ଝାମ୍ପ ମାରି ମା'ର ଲାଙ୍ଗୁଡ଼କୁ ଧରିବାକୁ ଚେଷ୍ଟା କରନ୍ତି । ମା' ଛୁଆଙ୍କ ଖେଳ ପ୍ରକୃତରେ ଖେଳ ଛଳିଆରେ ଶିକାର କରିବାର ଏକ କୌଶଳ ।

ସିଂହ ନିଜ ପରିବାର ସହ ରହେ । ଚାରି ପାଞ୍ଚଟି ସଭ୍ୟଙ୍କୁ ନେଇ ଗଠିତ ସିଂହର ପରିବାରକୁ ପ୍ରାଇଡ୍ କୁହାଯାଏ । ସିଂହ ପ୍ରାୟ ପଚିଶ ବର୍ଷଯାଏ ବଞ୍ଚିଥାଏ ।

# ବାଘ (TIGER)

ଆଗରୁ ଆମ ଦେଶରେ ବାଘ ନ ଥିଲେ । ଚୀନ୍‌ରୁ ଆସି କାଳକ୍ରମେ ଏମାନେ ଆମ ଦେଶସାରା ବ୍ୟାପି ଯାଇଥିଲେ । ତେବେ ମଣିଷ ଅତ୍ୟଧିକ ବାଘ ଶିକାର କରିବାରୁ ଏମାନଙ୍କ ସଂଖ୍ୟା କମିଯାଉଛି । ତେଣୁ ବାଘର ସୁରକ୍ଷା ପାଇଁ ସରକାର ଅନେକ ପଦକ୍ଷେପ ନେଉଛନ୍ତି ।

ବିଭିନ୍ନ ପ୍ରକାରର ବାଘ ଭିତରୁ ମହାବଳ ବାଘ ବା ରୟାଲ୍ ବେଙ୍ଗଲ୍ ଟାଇଗର୍ ସବୁଠୁ ବଡ଼ ଓ ଭୟଙ୍କର । ତା'ର ରୂପ ଓ ଢଙ୍ଗ ଭୟାନକ ଓ ରାଜକୀୟ । ହଳଦିଆ ରଙ୍ଗର ଦେହରେ କଳା କଳା ଚିହ୍ନ, ବଡ଼ ବଡ଼ ଦାନ୍ତ, ଶକ୍ତିଶାଳୀ ହାତଗୋଡ଼ ଓ ନଖ ଇତ୍ୟାଦି ଦେଖିବା ମାତ୍ରେ ମନରେ ଭୟ ଜାତ ହୁଏ । ଏହା ମୁଖ୍ୟତଃ ଜଙ୍ଗଲିଆ ତୃଣଭୂମିରେ ଏକୁଟିଆ ରହେ । ହରିଣ, ସମ୍ବର ଇତ୍ୟାଦି ବଡ଼ ବଡ଼ ଜନ୍ତୁଙ୍କୁ ଖାଏ । ଥରେ ଥରେ ରୋଗ ବା ଅନ୍ୟ କାରଣରୁ ଏହା ମଣିଷଖିଆ ହୋଇଯାଏ । ଯଦି ମା' ବାଘ ମଣିଷଖିଆ ହୋଇଥିବ ତା'ହେଲେ ସେ ତା' ଛୁଆକୁ ପିଲାଦିନୁ ମଣିଷ ଶିକାର ଶିଖାଏ ।

ବାଘ ଗରମ ମୋଟେ ସହିପାରେ ନାହିଁ । ଦିନବେଳେ ସାଧାରଣତଃ ଗଛ ଛାଇରେ ବିଶ୍ରାମ ନିଏ । ରାତିରେ ଶିକାର କରେ । ପାଣିକୁ ସେ ଭଲ ପାଏ ଏବଂ ଭଲଭାବେ ପହଁରିପାରେ ।

ସାଧାରଣତଃ ଥରକେ ତିନୋଟି ଛୁଆ ଜନ୍ମ ହୁଅନ୍ତି । ଜନ୍ମ ହେବା ସମୟରେ ଏମାନଙ୍କ ଆଖି ଖୋଲି ନ ଥାଏ । ଦେହ ତୁଳନାରେ ଏମାନଙ୍କ ମୁଣ୍ଡ ବେଶ୍ ବଡ଼ । ଏମାନେ ଖୁବ୍ କୌତୁକିଆ ଏବଂ ମା' ସହିତ ପରସ୍ପର ସହ ଖେଳିବାକୁ ଭଲ ପାଆନ୍ତି । ବାଘର ଆୟୁଷ ପ୍ରାୟ କୋଡ଼ିଏ ବର୍ଷ ।

ମାଈ ବାଘ ଅଣ୍ଡିରା ବାଘଠାରୁ ଓଜନ ଓ ଲମ୍ୱାରେ କମ୍ । ହିମାଳୟ ଅଞ୍ଚଳର ବାଘ ସମତଳ ଅଞ୍ଚଳର ବାଘଠାରୁ ସାମାନ୍ୟ ବଡ଼ । ସୁନ୍ଦରବନର ବାଘ ପ୍ରାୟ ଏକ ଉଭୟଚର ଭାବେ ଜୀବନଯାପନ କରିଥାଏ । ମହାବଳ ବାଘ ବ୍ୟତୀତ ଆମ ଦେଶର ବିଭିନ୍ନ ଅଞ୍ଚଳରେ କଲରାପତ୍ରିଆ ବାଘ, ବରଫ ବାଘ, ମେଘୁଆ ବାଘ, ଧଳାବାଘ ଇତ୍ୟାଦି ଦେଖାଯାନ୍ତି । ଆଫ୍ରିକା, ଏସିଆ ଓ ଆମେରିକା ମହାଦେଶର କେତେକ ଅଞ୍ଚଳରେ ମଧ୍ୟ ବିଭିନ୍ନ ପ୍ରକାରର ବାଘ ଦେଖାଯାଆନ୍ତି । ଆଜିକାଲି ଚିଡ଼ିଆଖାନାରେ କୃତ୍ରିମ ପ୍ରଜନନ ସାହାଯ୍ୟରେ ସଙ୍କର ବାଘ ଓ ସଙ୍କର ସିଂହ ଜାତ କରାଯାଉଛି ।

# ଚିତାବାଘ (CHEETAH)

ଅଳ୍ପ କେତେ ବର୍ଷ ପୂର୍ବେ ଚିତାବାଘ ଆମ ଦେଶରେ ବହୁ ସଂଖ୍ୟାରେ ଦେଖାଯାଉଥିଲେ । କିନ୍ତୁ ଅତ୍ୟଧିକ ଶିକାର ଓ ଅନ୍ୟ କେତେ କାରଣରୁ ଆଶଙ୍କା କରାଯାଉଛି ଯେ, ଏହା ଆମ ଦେଶରୁ ପ୍ରାୟ ସମ୍ପୂର୍ଣ୍ଣ ରୂପେ ଲୋପ ପାଇଯାଇଛି । ଏବେ କେବଳ ଆଫ୍ରିକାରେ ଚିତାବାଘ ଦେଖାଯାଉଛି ।

ଏମାନେ ଦଳବଦ୍ଧ ହୋଇ ସମତଳ ତୃଣଭୂମିରେ ରହନ୍ତି ଏବଂ ମିଳିମିଶି ଶିକାର କରନ୍ତି । ଉଭୟ ବିରାଡ଼ି ଓ କୁକୁର ପରି ଲୁଚିଛପି ଓ ହଠାତ୍ ଜୋର୍‌ରେ ଦୌଡ଼ି ଦୌଡ଼ି ଚିତା ଶିକାର ଧରେ । ଯେକୌଣସି ମାଂସାଶୀ ପଶୁ ତୁଳନାରେ ଏମାନେ ବେଶ୍ ସୁନ୍ଦର । ସିଂହ ଓ ବାଘ ତୁଳନାରେ ଚିତାର ମୁଣ୍ଡ ଛୋଟ । କିନ୍ତୁ ତା'ର ଗୋଡ଼ ବେଶ୍ ଶକ୍ତିଶାଳୀ ଓ ସକ୍ରିୟ । ତେଣୁ ସେ ଘଣ୍ଟାରେ ୬୦ ମାଇଲ ବେଗରେ ଦୌଡ଼ିପାରେ ଏବଂ ସହଜରେ ହରିଣ ଇତ୍ୟାଦି ଜନ୍ତୁ ଶିକାର କରିପାରେ । ସ୍ଥଳଚର ପଶୁମାନଙ୍କ ଭିତରେ ଚିତା ସବୁଠାରୁ ବେଶୀ ଦ୍ରୁତଗାମୀ । କିନ୍ତୁ ସେ ବେଶୀ ସମୟ ଦୌଡ଼ିପାରେ ନାହିଁ । ମାତ୍ର ଦୁଇ ସେକେଣ୍ଡ ଭିତରେ ସେ ତା'ର ଗତିବେଗ ଘଣ୍ଟାକୁ ୭୦ କିଲୋମିଟର ଯାଏ ବଢ଼ାଇ ଦେଇପାରେ । ଏହା ଏକ ଆଶ୍ଚର୍ଯ୍ୟର ବିଷୟ । କାରଣ ଅନ୍ୟ କୌଣସି ଜୀବ ବା ରେସିଂ କାର୍ ପକ୍ଷେ ଏହା ଆଦୌ ସମ୍ଭବ ନୁହେଁ । ଏଥିପାଇଁ ତା'ର "ତନୁପାତଳୀ" ଚେହେରା ଓ ବଳିଷ୍ଠ ତଥା ସକ୍ରିୟ ପେଶୀ ମୁଖ୍ୟତଃ ଦାୟୀ । ତେବେ ଅତି ବେଶୀରେ ମାତ୍ର ପନ୍ଦରରୁ କୋଡ଼ିଏ ସେକେଣ୍ଡ ଯାଏ ସେ ଖୁବ୍ ଯୋର୍‌ରେ ଦୌଡ଼ିପାରେ । ତା'ଠାରୁ ବେଶୀ ସମୟ ଦୌଡ଼ିବାପାଇଁ ତା'ର ଦମ୍ ରହେ ନାହିଁ । ତେଣୁ ଏହି ଅଳ୍ପ ସମୟ ମଧ୍ୟରେ ଶିକାର ନ ପାଇଲେ ସେ ତା'ର ଆଶା ଛାଡ଼ିଦିଏ ।

ଚିତାବାଘ ଚେହେରାର ବିଶେଷତ୍ୱ ହେଲା ତା' ନାକର ଦୁଇପାଖରେ ଆଖିରୁ ପାଟିଯାଏ ଲମ୍ବିଥିବା ଦୁଇଟି କଳାଗାର ଓ ଦେହସାରା ଗୋଲ ଗୋଲ ଚିହ୍ନ । ତା'ଛଡ଼ା ତା'ର ହାତଗୋଡ଼ର ନଖ ସବୁବେଳେ ବାହାରକୁ ବାହାରି ରହିଥିଲା ପରି ମନେହୁଏ । ଏ ଦୃଷ୍ଟିରୁ ଚିତା ସିଂହ, ବାଘ ଓ ବିରାଡ଼ି ଠାରୁ ଭିନ୍ନ ଏବଂ କୁକୁର ସହ ତୁଳନୀୟ ।

ଚିତା ସାଧାରଣତଃ ନିଜ ପରିବାର ସହ ରହେ ଓ ଦିନରେ ଶିକାର କରିଥାଏ । ପରିବାରର ସବୁ ସଭ୍ୟ ଖାଦ୍ୟ ବାଣ୍ଟିକୁଣ୍ଟି ଖାଆନ୍ତି । ପ୍ରତ୍ୟେକ ସଭ୍ୟ ଅନ୍ୟମାନଙ୍କ ପ୍ରତି ବେଶ୍ ସ୍ନେହଶୀଳ ।



ଦେଶ ବିଦେଶର ଜୀବଜନ୍ତୁ ।

# ଭାଲୁ (BEAR)

ପିଲାମାନଙ୍କର ଏକ ପ୍ରିୟ ଜୀବ ହେଲା ଭାଲୁ । ସର୍କସରେ ଓ ଅନ୍ୟ ଜାଗାରେ ଭାଲୁ ଖେଳ ପିଲାମାନଙ୍କୁ ବେଶ୍ ଆନନ୍ଦ ଦିଏ । ଭାଲୁକୁ ଖୁବ୍ ସହଜରେ ଧରି ମଣିଷ ତାକୁ ପୋଷା ମନାଏ ।

ଆମ ଦେଶରେ ତିନି ପ୍ରକାରର ଭାଲୁ ଦେଖାଯାଆନ୍ତି । ସେମାନଙ୍କ ମଧ୍ୟରୁ ଦୁଇ ପ୍ରକାର ଭାଲୁ ମୁଖ୍ୟତଃ ହିମାଳୟର ପାଦଦେଶରେ ମିଳନ୍ତି । ଦେଶର ପ୍ରାୟ ଅନ୍ୟ ସବୁ ଜଙ୍ଗଲିଆ ଅଞ୍ଚଳରେ ବାସ କରୁଥିବା ଭାଲୁକୁ ଅଳସୁଆ ଭାଲୁ ବା ସ୍ଲଥ୍ ବିଅର କୁହାଯାଏ । ତା'ର ଶରୀର ଅତ୍ୟନ୍ତ ଲୋମଶ । ଦେହସାରା ଲମ୍ବା ଲମ୍ବା ଟାଆଁସିଆ ଲୋମରେ ପରିପୂର୍ଣ୍ଣ । ତା'ର ରଙ୍ଗ କଳା, କିନ୍ତୁ ଛାତି ପାଖରେ ଇଂରାଜୀ ଅକ୍ଷର 'ଭି' V ପରି ଏକ ଧଳା ଚିହ୍ନ ଦେଖାଯାଏ । ଲାଙ୍ଗୁଡ଼ ଛୋଟ । ଭାଲୁ ଭଲଭାବେ ଶୁଣିପାରେ ନାହିଁ କି ଦେଖିପାରେ ନାହିଁ । କେବଳ ପାଖରେ ଥିବା ଜିନିଷ ହିଁ ଦେଖିପାରେ ।

ସାଧାରଣତଃ ଫଳମୂଳ, ପିମ୍ପୁଡ଼ି, ଉଇ ଓ ଅନ୍ୟ ଜୀବଙ୍କ ମାଂସ ଭାଲୁର ଖାଦ୍ୟ । ପୃଥୁଳକାୟ ହୋଇଥିଲେ ମଧ୍ୟ ସେ ଫଳ ଓ ମହୁ ସଂଗ୍ରହ କରିବା ପାଇଁ ଗଛ ଚଢ଼ିଥାଏ । ମହୁ ଖାଇବାକୁ ସେ ଭାରି ଭଲପାଏ । ଭାଲୁ ଶୁଙ୍ଘି ଶୁଙ୍ଘି ଖାଦ୍ୟ ସଂଗ୍ରହ କରେ । ପ୍ରାୟ ରାତିରେ ହିଁ ସେ ଖାଦ୍ୟ ସଂଗ୍ରହ କରିଥାଏ ।

ପ୍ରାୟ ସାତମାସ ମା' ପେଟରେ ରହିବା ପରେ ଥରକେ ଗୋଟିଏ ବା ଦୁଇଟି ଛୁଆ ଜନ୍ମ ହୁଅନ୍ତି । ଏମାନେ ଡିସେମ୍ବରରୁ ଜାନୁୟାରୀ ମାସ ଭିତରେ ଜନ୍ମ ହୋଇଥାଆନ୍ତି । ଜନ୍ମ ସମୟରେ ଏମାନେ ଖୁବ୍ ଛୋଟ ଓ ଏମାନଙ୍କ ଓଜନ ଏକ ପାଉଣ୍ଡରୁ ବି କମ୍ । କିନ୍ତୁ ବୟସ୍କାବସ୍ଥାରେ ଏମାନଙ୍କ ଓଜନ ପ୍ରାୟ ପାଞ୍ଚଶହ ପାଉଣ୍ଡ । ଅଳସୁଆ ଭାଲୁର ଆୟୁଷ ପ୍ରାୟ ଚାଳିଶ ବର୍ଷ ।

ଭାରତ ଛଡ଼ା ଅନ୍ୟାନ୍ୟ ଦେଶରେ ବିଭିନ୍ନ ପ୍ରକାରର ଭାଲୁ ଦେଖାଯାଆନ୍ତି । ମେରୁ ଅଞ୍ଚଳରେ ବରଫରେ ବାସ କରୁଥିବା ଭାଲୁର ଦେହର ରଙ୍ଗ ପୂରାପୂରି ଧଳା । ଅଷ୍ଟ୍ରେଲିଆରେ ଏକପ୍ରକାର ଭାଲୁ ଦେଖାଯାଆନ୍ତି । ଏହା ଖୁବ୍ ଛୋଟ ଏବଂ କଙ୍ଗାରୁ ପରି ଏମାନେ ମଧ୍ୟ ଅପରିପକ୍ୱ ଛୁଆଙ୍କୁ ଜନ୍ମ ଦିଅନ୍ତି । ଛୁଆ ମା'ର ପେଟ ତଳେ ଥିବା ଏକ ଥଳୀରେ କିଛିଦିନ ରହି, ମା' କ୍ଷୀର ଖାଇ ବଡ଼ ହେବା ପରେ ବାହାରକୁ ଆସେ । ଇଉକାଲିପଟାସ୍ ଗଛର ପତ୍ର ଏମାନଙ୍କର ମୁଖ୍ୟ ଖାଦ୍ୟ । ଏମାନେ ମୁଖ୍ୟତଃ ଏକ ପ୍ରକାର ଗଛରେ ହିଁ ବାସ କରିଥାଆନ୍ତି । ଏହି ଭାଲୁ 'କୋଆଲା ବିଅର୍' ନାମରେ ପରିଚିତ ।

# ହାତୀ (ELEPHANT)

ସ୍ଥଳଚର ପ୍ରାଣୀମାନଙ୍କ ଭିତରେ ହାତୀ ସବୁଠାରୁ ବଡ଼ । ଭାରତ, ବର୍ମା, ଶ୍ରୀଲଙ୍କା ଓ ମାଳୟ ଆଦି ଦେଶ ଓ ଆଫ୍ରିକା ମହାଦେଶରେ ହାତୀ ବାସ କରେ । ଭାରତୀୟ ହାତୀର ଉଚ୍ଚତା ପ୍ରାୟ ୯ ଫୁଟ ଓ ଓଜନ ୫ ଟନ୍ । ଆଫ୍ରିକାର ହାତୀ ଆହୁରି ବଡ଼ । ଉଚ୍ଚତା ପ୍ରାୟ ୧୧ ଫୁଟ ଓ ଓଜନ ୬ ଟନ୍ ଏବଂ ତା'ର କାନଗୁଡ଼ିକ ବେଶ୍ ବଡ଼ । ଆଫ୍ରିକାର ବିଷୁବ ଅଞ୍ଚଳରେ ଥିବା ହାତୀର କାନ ପ୍ରାୟ ଗୋଲ ।

ଶୁଣ୍ଢ ହାତୀର ବିଚିତ୍ରତମ ଅଙ୍ଗ । ଏହା ତା'ର ଉପର ପାଟି ଓ ନାକର ଏକ ପ୍ରଲମ୍ବିତ ରୂପ । ଶୁଣ୍ଢ ଅଗରେ ଥିବା ଆଙ୍ଗୁଠି ପରି ଏକ ଅଙ୍ଗ ଛୋଟ ଛୋଟ ଜିନିଷ ଧରିବାରେ ସାହାଯ୍ୟ କରେ । ଶୁଣ୍ଢଦ୍ୱାରା ହାତୀ ଗଛରୁ ଫଳ ତୋଳେ, ବିଭିନ୍ନ ଜିନିଷ ଧରେ । ଖାଦ୍ୟ ଓ ପାଣି ପାଟିରେ ପୂରାଇ ପାଣି ଶୋଷି ଦେହ, ମୁଣ୍ଡରେ ପକାଏ । ଏହା ନାକ ପରି ମଧ୍ୟ କାମ କରେ ।

ଉପର ପାଟିର ଦୁଇଟି ଆଗଦାନ୍ତ ଖୁବ୍ ବଡ଼ ଓ ଆଗକୁ ଲମ୍ବି ଆସିଥାଏ । ଅଣ୍ଡିରା ହାତୀ ବା ଦନ୍ତାହାତୀର ଏହା ଖୁବ୍ ବଡ଼ । ଏହା ଅତି ମୂଲ୍ୟବାନ୍ ଓ ଏଥିରୁ ଅଳଙ୍କାର ଏବଂ ସୌଖୀନ ଜିନିଷ ପ୍ରସ୍ତୁତ କରାଯାଏ । କଳଦାନ୍ତଗୁଡ଼ିକ ମଧ୍ୟ ବେଶ୍ ବଡ଼ ଏବଂ ଡାଳ, ପତ୍ର, ନଡ଼ିଆ ଓ ଅନ୍ୟ ଫଳ ଇତ୍ୟାଦି ଖଣ୍ଡ ଖଣ୍ଡ କରି ଭାଙ୍ଗି ଖାଇବାରେ ସାହାଯ୍ୟ କରେ । ହାତୀ ଦିନକୁ ପ୍ରାୟ ୩୦୦–୪୦୦ କିଲୋଗ୍ରାମ୍ ଖାଦ୍ୟ ଖାଇଥାଏ ।

ହାତୀ ସହଜରେ ପୋଷା ମାନେ ଓ ମଣିଷକୁ ବହୁତ ସାହାଯ୍ୟ କରିଥାଏ । ସେ ପ୍ରାୟ ୬୦–୭୦ ବର୍ଷ ବଞ୍ଚିରହେ । ତା'ର ମସ୍ତିଷ୍କ ବେଶ୍ ଉନ୍ନତ ଏବଂ ସ୍ମୃତିଶକ୍ତି ପ୍ରଖର । ଶ୍ରବଣ ଶକ୍ତି ମଧ୍ୟ ଭଲ, କିନ୍ତୁ ଦୃଷ୍ଟିଶକ୍ତି ସାମାନ୍ୟ କମ୍ ।

ଏମାନେ ବଣରେ ସାଧାରଣତଃ ଦଳବଦ୍ଧ ହୋଇ ରହନ୍ତି । ଥରକେ ଗୋଟିଏ ଛୁଆ ଜନ୍ମ ହୁଏ ଏବଂ ସେ ସମୟରେ ଅନ୍ୟ ହାତୀମାନେ ମା ଓ ପିଲାର ସମସ୍ତ କାର୍ଯ୍ୟ କରିଥା'ନ୍ତି । ଓଜନ ଦୃଷ୍ଟିରୁ ଛୁଆ ହାତୀଠାରୁ ବଡ଼ ହାତୀ ପ୍ରାୟ କୋଡ଼ିଏ ଗୁଣ ବଡ଼ ।

ହାତୀ ଏକ ଶାନ୍ତଶିଷ୍ଟ ଜୀବ । କିନ୍ତୁ ଶୀତଦିନେ ଓ ଥରେ ଥରେ ଅନ୍ୟ ସମୟରେ ଦନ୍ତାହାତୀ ବିପଜ୍ଜନକ ହୋଇଥାଏ । ମଣିଷ ପରି ହାତୀମାନେ ମଧ୍ୟ ଅନେକ ନିୟମ ମାନି ଚଳନ୍ତି । ରୋମାନ୍‌ମାନେ ପ୍ରଥମେ ହାତୀକୁ ସର୍କସ୍‌ରେ ଖେଳ ଦେଖାଇବା ପାଇଁ ତାଲିମ ଦେଇଥିଲେ ।

# ଜଳହସ୍ତୀ (HIPPOPOTAMUS)

ଜଳହସ୍ତୀ ଏକ ଅତିକାୟ ଜୀବ । ତା'ର ଓଜନ ପ୍ରାୟ ତିନି ହଜାର ପାଞ୍ଚଶହ କିଲୋଗ୍ରାମ୍ ଏବଂ ଲମ୍ବା ପ୍ରାୟ ଚାରି ମିଟର । ଉଚ୍ଚତା ପ୍ରାୟ ଏକ ମିଟର । କେବଳ ମୁଣ୍ଡର ଓଜନ ପ୍ରାୟ ଏକହଜାର କିଲୋଗ୍ରାମ୍ । ଗୋଡ଼ଗୁଡ଼ିକ ଛୋଟ ଓ ବେଶ୍ ମୋଟା । ଶରୀର କେଶହୀନ ଏବଂ ଚମଡ଼ା ଖୁବ୍ ମୋଟା । ପାଟି ବେଶ୍ ଓସାରିଆ ଓ ପାଟିର ଓସାର ଦେଢ଼ଫୁଟରୁ ଅଧିକ । ସେ ଯେତେବେଳେ ପାଟି ପୂରା ଖୋଲେ ତାହା ଏକ ଛୋଟକାଟିଆ ଗୁହାପରି ଦେଖାଯାଏ ଏବଂ ସେତେବେଳେ ଦୁଇପାଟିର ବ୍ୟବଧାନ ପ୍ରାୟ ଏକ ମିଟର ।

ଜଳହସ୍ତୀ ଆଫ୍ରିକା ମହାଦେଶର ହ୍ରଦ, ବଡ଼ ପୁଷ୍କରିଣୀ ଓ ଧୀରେ ଧୀରେ ବହୁଥିବା ଛୋଟ ଓ ବଡ଼ ନଦୀରେ ବାସ କରେ । ଦିନରେ ଅଧିକାଂଶ ସମୟ ସେ ପାଣିରେ ବୁଡ଼ି ରହିଥାଏ । ସେ ସମୟରେ ତା'ର ଆଖି, କାନ ଓ ନାକ ପାଣି ଉପରକୁ ଥାଏ । ଦରକାର ହେଲେ ସେ ପାଣିରେ ପୂରା ବୁଡ଼ିଯାଏ । କାନ ଓ ନାକ ପୂରା ବନ୍ଦ କରି ସେ ପାଣି ଭିତରେ ଭଲଭାବେ ପହଁରିପାରେ ଓ ପାଣି ତଳେ କାଦୁଅ, ମାଟି ବା ବାଲିରେ ଘଣ୍ଟାକେ ପ୍ରାୟ ଦଶ କିଲୋମିଟର ବେଗରେ ଚାଲିପାରେ । ଥରେ ଥରେ ପାଣିରୁ ବାହାରି ବାଲିରେ ଖରାରେ ଶୋଇରହେ । ଅଧିକାଂଶ ସମୟ ପାଣିରେ ରହୁଥିଲେ ସୁଦ୍ଧା ଏମାନେ ସ୍ଥଳଚର ଭାବେ ପରିଚିତ । ଓଜନ ଦୃଷ୍ଟିରୁ ଏମାନେ ଦ୍ୱିତୀୟ ବୃହତ୍ତମ ସ୍ଥଳଚର ଜୀବ ।

ପାଣିରେ ଥିବା ଗଛ ପତ୍ର ସେ ଖାଦ୍ୟ ରୂପେ ଗ୍ରହଣ କରେ । ରାତିରେ ସେ ବାହାରକୁ ଆସେ ଓ ପ୍ରଚୁର ପରିମାଣରେ ଘାସ ଇତ୍ୟାଦି ଖାଏ । ଥରେ ଥରେ ବହୁ ପରିମାଣରେ ଫସଲ ମଧ୍ୟ ନଷ୍ଟ କରିଥାଏ । ଏମାନେ ସାଧାରଣତଃ ଦଳବଦ୍ଧ ହୋଇ ରହନ୍ତି । ଦଳର ସଭ୍ୟ ସଂଖ୍ୟା କୋଡ଼ିଏରୁ ତିରିଶ ।

ପ୍ରାୟ ଆଠ ନ' ମାସ ମା' ପେଟରେ ରହିବା ପରେ ବର୍ଷାଋତୁରେ ଥରକେ ସାଧାରଣତଃ ଗୋଟିଏ ମାତ୍ର ଛୁଆ ଜନ୍ମ ହୁଏ । ଏହା ଅତି ଛୋଟ ଏବଂ ତା'ର ଓଜନ ପଚାଶ କିଲୋଗ୍ରାମ । ଜନ୍ମ ହେବାର କିଛିଦିନଯାଏ ମା' ଛୁଆକୁ ପିଠିରେ ବସାଇ ଯିବା ଆସିବା କରେ ।

ସେମାନେ ସାଧାରଣତଃ କଳହପ୍ରିୟ । ପରସ୍ପର ସହ ଓ ଥରେ ଥରେ ପାଖରେ ବାସ କରୁଥିବା କୁମ୍ଭୀର ସହ ମଧ୍ୟ ସେମାନେ ଝଗଡ଼ା କରିଥାଆନ୍ତି ।

ଜଳହସ୍ତୀର ଆୟୁଷ ପ୍ରାୟ ପଚାଶ ବର୍ଷ ।

# ଗଣ୍ଡା (RHINOCEROS)

ଗଣ୍ଡା ବାସ୍ତବିକ ଏକ ବିଚିତ୍ର ଜୀବ । ପୃଥୁଳ ଶରୀର, ମୋଟା ଗୋଡ଼, ଛୋଟ ପାଟି, ନାକ ଅଗରେ ଶିଙ୍ଗ, ଛୋଟ ଲାଙ୍ଗୁଡ଼ ଓ ତା' ଅଗରେ କେଶଗୁଚ୍ଛ ଇତ୍ୟାଦି ଲକ୍ଷଣ ଯୋଗୁଁ ଗଣ୍ଡା କୌତୁକିଆ ଦେଖାଯିବା ସଙ୍ଗେ ସଙ୍ଗେ ଭୟାନକ ଦେଖାଯାଏ । ଚମଡ଼ା ମୋଟା ଓ କୁଞ୍ଚୁକୁଞ୍ଚିଆ ହୋଇଥିବାରୁ ଜଣାଯାଏ ଯେମିତି ସେ ସାଞ୍ଜୁ ପିନ୍ଧିଛି ଯୁଦ୍ଧ କରିବା ପାଇଁ । ତା'ର ଉଚ୍ଚତା ପ୍ରାୟ ଚାରି ଫୁଟରୁ ଛଅ ଫୁଟ ଏବଂ ଓଜନ ପ୍ରାୟ ଦୁଇରୁ ଅଢ଼େଇ ଟନ୍ ।

ଆମ ଦେଶରେ ମୁଖ୍ୟତଃ ଆସାମରେ ଗଣ୍ଡା ଦେଖାଯାଏ । ତା'ଛଡ଼ା ଜାଭା, ସୁମାତ୍ରା ଓ ଆଫ୍ରିକାରେ ମଧ ଗଣ୍ଡା ବାସ କରନ୍ତି । ଭାରତୀୟ ଗଣ୍ଡାର ନାକ ଅଗରେ ଗୋଟିଏ ଶକ୍ତ ଶିଙ୍ଗ ଥାଏ । ଏହା ଗୋରୁଗାଈ ବା ହରିଣଙ୍କ ଶିଙ୍ଗ ପରି ନୁହେଁ । ପ୍ରକୃତରେ ଏହା ଗୁଡ଼ିଏ ଟାଣୁଆ କେଶକୁ ନେଇ ଗଠିତ । ଶିଙ୍ଗ ଭାଙ୍ଗିଗଲେ ଆଉ ଗୋଟିଏ ଶିଙ୍ଗ ଜାତ ହୁଏ । ଏହାକୁ ସେ ଆକ୍ରମଣ ଓ ପ୍ରତିରକ୍ଷା ପାଇଁ ବ୍ୟବହାର କରିଥାଏ ।

ଗଣ୍ଡା ଏକ ଶାନ୍ତିପ୍ରିୟ ଜୀବ । କିନ୍ତୁ ସେ ଅତି ସହଜରେ ଉତ୍ତେଜିତ ହୋଇ ଆକ୍ରମଣ କରିପାରେ । ଭାରତୀୟ ଗଣ୍ଡାର ଉଭୟ ଉପର ଓ ତଳ ପାଟିରେ ବଡ଼ ବଡ଼ ଦାନ୍ତ ଥାଏ । ଆକ୍ରମଣ ପାଇଁ ଦାନ୍ତ ହିଁ ତା'ର ମୁଖ୍ୟ ଅସ୍ତ୍ର । କିନ୍ତୁ ଆଫ୍ରିକୀୟ ଗଣ୍ଡାର ଉପର ପାଟିରେ ଦାନ୍ତ ନ ଥାଏ । ତେଣୁ ସାଧାରଣତଃ ସେ ଶିଙ୍ଗ ଦ୍ୱାରା ଆକ୍ରମଣ କରିଥାଏ । ଗଣ୍ଡା କେତେକ ନିର୍ଦ୍ଦିଷ୍ଟ ଜାଗାରେ ହିଁ ମଳତ୍ୟାଗ କରିଥାଏ । ଆଶ୍ଚର୍ଯ୍ୟର କଥା ଯେ, ସେ ସେହି ଜାଗାରେ ପହଞ୍ଚିବା ପାଇଁ ପଛେଇ ପଛେଇ ହିଁ ଚାଲେ । ଏହି ସମୟରେ ଶିକାରୀମାନେ ତାକୁ ସହଜରେ ମାରି ପାରନ୍ତି ।

ସାଧାରଣତଃ ଗଣ୍ଡା ଏକୁଟିଆ ରହେ । ଘାସ, ପତ୍ର ଇତ୍ୟାଦି ତା'ର ପ୍ରଧାନ ଖାଦ୍ୟ । ସେମାନଙ୍କ ଦୃଷ୍ଟିଶକ୍ତି ଦୁର୍ବଳ । ଏହା ବେଶୀ ଦୂରରେ ବା ଦୁଇପାଖରେ ଥିବା ଜିନିଷ ଦେଖିପାରେ ନାହିଁ । ଏହି ଦୁର୍ବଳତା ଲାଗି ଆକ୍ରମଣ କରିବାବେଳେ ସେମାନେ ପ୍ରାୟ ଲକ୍ଷ୍ୟଭ୍ରଷ୍ଟ ହୋଇଥାଆନ୍ତି । ତେବେ ସେମାନଙ୍କର ଆଘ୍ରାଣ ଓ ଶ୍ରବଣ ଶକ୍ତି ପ୍ରଖର ।

ଗଣ୍ଡାର ଶିଙ୍ଗ, ମୂତ୍ର ଓ ରକ୍ତରେ ଔଷଧି ଗୁଣ ଅଛି ବୋଲି ବିଶ୍ୱାସ କରାଯାଏ । ତେଣୁ ବହୁ ସଂଖ୍ୟାରେ ଗଣ୍ଡା ଶିକାର କରାଯାଉଛି । ତେବେ ଗଣ୍ଡାର ସୁରକ୍ଷା ପାଇଁ ସରକାର ଆଇନ କରିଛନ୍ତି । ଏବେ ଆସାମର କାଜିରଙ୍ଗା ଅଭୟାରଣ୍ୟରେ ଗଣ୍ଡା ସୁରକ୍ଷିତ ଭାବେ ରହିଛନ୍ତି । ଗଣ୍ଡାର ଆୟୁଷ ପ୍ରାୟ ପଇଁଚାଳିଶ ବର୍ଷ ।

ସବୁଠାରୁ ବଡ଼ ଗଣ୍ଡା ଆଫ୍ରିକାର ଉଗାଣ୍ଡାରେ ବାସ କରେ । ତା'ର ଦେହର ରଙ୍ଗ ସଫା । ଆଫ୍ରିକାର ଅନ୍ୟ ଅଞ୍ଚଳରେ ଥିବା ଗଣ୍ଡାକୁ କଳାଗଣ୍ଡା କୁହାଯାଏ । ଏମାନଙ୍କ ଦେହର ରଙ୍ଗ କଳା ।

# ବଣ ମଇଁଷି (WILDBUFFLO)

ବଣ ମଇଁଷି ଓଡ଼ିଶା ସମେତ ଦେଶର ଅନେକ ଅଞ୍ଚଳରେ ଦେଖାଯାଏ । ମଣିଷ ବହୁ ବର୍ଷ ପୂର୍ବେ ବଣ ମଇଁଷିକୁ ଜଙ୍ଗଲରୁ ଧରି, ପୋଷା ମନାଇ ଚାଷ ଓ ଅନ୍ୟ କାମରେ ବ୍ୟବହାର କରିବା ଆରମ୍ଭ କଲା । ତେଣୁ ଗୃହପାଳିତ ମଇଁଷି ବଣ ମଇଁଷିର ବଂଶଜ । ଏହି କାରଣରୁ ଉଭୟଙ୍କ ଚେହେରା କିଛି କିଛି ମିଶୁଛି । ତେବେ ବଣ ମଇଁଷିର ଚେହେରା ବେଶ୍ ଭୟାନକ । ତା'ର ଉଚ୍ଚତା ମଧ ଅଧିକ । ତା'ର ଶିଙ୍ଗ ମଧ ବଡ଼ ଏବଂ ସେ ଅଧିକ ବଳବାନ ଓ ସକ୍ରିୟ । ତା'ର ଚାରିଗୋଡ଼ର ତଳ ଅଂଶ ସାମାନ୍ୟ ଧଳା । ତା'ର ଓଜନ ପ୍ରାୟ ଏକ ଟନ୍ । ଉଚ୍ଚତା ପାଞ୍ଚଫୁଟରୁ ସାଢ଼େ ଛଅଫୁଟ ।

ବଣରେ ଥିବା ବଡ଼ ପୋଖରୀ ଓ ସନ୍ତସନ୍ତିଆ ଜାଗାରେ ବଣ ମଇଁଷି ସାଧାରଣତଃ ରହେ । ପ୍ରଚୁର ପରିମାଣରେ ଘାସ ମିଳୁଥିବା ଜାଗାରେ ବୁଲାବୁଲି କରି ଖାଦ୍ୟ ସଂଗ୍ରହ କରେ । ଖରାବେଳେ ପାଣିରେ ବୁଡ଼ି ରହିବାକୁ ବା ଗଛ ଛାଇରେ ରହିବାକୁ ଭଲପାଏ । ସକାଳେ ଓ ସନ୍ଧ୍ୟାରେ ଚରିବାକୁ ବାହାରେ ।

ସାଧାରଣତଃ ସେମାନେ ଦଳବଦ୍ଧ ହୋଇ ରହନ୍ତି । କିଛି ବିପଦ ଆସିଲେ ବେଶ୍ ଜୋର୍‌ରେ ଦୌଡ଼ିଯାଇ ସେମାନେ ନିଜକୁ ରକ୍ଷା କରିପାରନ୍ତି । ତେବେ ସେମାନେ ଖୁବ୍ ସାହସୀ ଏବଂ ଆବଶ୍ୟକ ହେଲେ ଥରେ ଥରେ ବାଘ ସହ ମଧ ଲଢ଼େଇ କରିଥାଆନ୍ତି । ବେଳେ ବେଳେ ବାଘ ମଧ ଏମାନଙ୍କୁ ଡରି ଚାଲିଯାଏ । ପାଖରେ ସଦ୍ୟଜାତ ବାଛୁରୀ ଥିବା ଅବସ୍ଥାରେ ମାଈ ମଇଁଷି ବେଶ୍ ବିପଜ୍ଜନକ । ଶିଙ୍ଗଦ୍ୱାରା ବାରମ୍ବାର ଉପରକୁ ଫୋପାଡ଼ି ଓ ତଳେ କଚାଡ଼ି ଦଳେ ମଇଁଷି ଗୋଟିଏ ସିଂହକୁ ମଧ ମାରିଦେବା ଦୃଷ୍ଟାନ୍ତ ରହିଛି ।

ଟିଙ୍କ ଓ ଉକୁଣି ଇତ୍ୟାଦି କୀଟ ପତଙ୍ଗ ଖାଇବା ପାଇଁ ଏକ ପ୍ରକାରର ପକ୍ଷୀ ସେମାନଙ୍କ ପିଠି ଉପରେ ବସିବା ସାଧାରଣତଃ ଦେଖାଯାଇଥାଏ । ମଇଁଷି ଓ ପକ୍ଷୀର ଏପ୍ରକାରର ସମ୍ପର୍କକୁ ସହଜୀବିତା କୁହାଯାଏ । ଏଥିରୁ ଉଭୟେ ଉପକାର ପାଆନ୍ତି ।

ଆମ ଦେଶରେ ମଇଁଷି ପରି ଦେଖାଯାଉଥିବା ଆଉ କେତେକ ପ୍ରାଣୀଙ୍କ ଭିତରେ ଭାରତୀୟ ଗୌର ବା ଭାରତୀୟ ବାଇସନ୍ ଅନ୍ୟତମ । ତା'ଛଡ଼ା ଆମେରିକା ଓ ଇଉରୋପରେ ବାସ କରୁଥିବା ବାଇସନ୍ ସହ ବଣ ମଇଁଷି କେତେକାଂଶରେ ତୁଳନୀୟ । ତେବେ ବାଇସନ୍‌ର ଓଜନ ବେଶୀ ଓ ଶିଙ୍ଗ ଛୋଟ । ସେମାନଙ୍କ ଆୟୁଷ ପ୍ରାୟ କୋଡ଼ିଏରୁ ପଚିଶ ବର୍ଷ ।

# ଜେବ୍ରା (ZEBRA)

ଜେବ୍ରା ଆଫ୍ରିକା ମହାଦେଶରେ ବାସ କରେ । ଏହା ସାଧାରଣତଃ ଘୋଡ଼ା ଜାତୀୟ ଏକ ପଶୁ । ଦେହସାରା ଥିବା କଳା ଓ ଧଳା ଗାର ବା ପଟା ପଟା ଦାଗ ତାକୁ ସୁନ୍ଦର ଓ ବିଚିତ୍ର କରିଛି । ବିଶେଷତଃ ସକାଳ ଓ ସନ୍ଧ୍ୟା ସମୟରେ ଏହି ଚିହ୍ନ ଯୋଗୁଁ ସେ ନିଜ ପରିବେଶ ସହ ବେଶ୍ ସୁନ୍ଦରଭାବେ ମିଶିଯାଏ । ତେଣୁ ଶିକାରୀ ବା ଶତ୍ରୁ ତାକୁ ସହଜରେ ଦେଖିପାରେ ନାହିଁ ।

ଜେବ୍ରା ଏକ ତୃଣଭୋଜୀ ପଶୁ । କିନ୍ତୁ ଗାଈଗୋରୁ ପରି ସେ ରୋମନ୍ଥନ କରେ ନାହିଁ । ତା'ର ପାକସ୍ଥଳୀର ଗଠନ ସରଳ । ତା'ର ହଜମ କରିବା ଶକ୍ତି ବେଶ୍ ଭଲ । ସାଧାରଣତଃ ଖୋଲା ଏବଂ ଖୁବ୍ ବଡ଼ ତୃଣଭୂମିରେ ସେ ବୁଲାବୁଲି କରେ ଏବଂ ଖାଦ୍ୟ ସଂଗ୍ରହ କରେ । ଜେବ୍ରା ଭଲ ଦେଖିପାରେ, ଶୁଣିପାରେ ଓ ଧାଇଁପାରେ । ତେଣୁ ସହଜରେ ଆତ୍ମରକ୍ଷା କରିପାରେ । ଜେବ୍ରା ଦଳବଦ୍ଧ ହୋଇ ରହନ୍ତି । ସାଧାରଣତଃ ଏମାନେ ଟିକିଏ ଲାଜକୁଳା, କିନ୍ତୁ ନିଜକୁ ରକ୍ଷା କରିବା ପାଇଁ ଆବଶ୍ୟକ ହେଲେ ଦାନ୍ତ ଓ ଖୁରା ବ୍ୟବହାର କରି ଯୁଦ୍ଧ କରିପାରନ୍ତି ।

ସାଧାରଣତଃ ସକାଳେ ଓ ସନ୍ଧ୍ୟାରେ ସେମାନେ ଦଳବଦ୍ଧ ହୋଇ ପାଣି ପିଇବା ପାଇଁ ହ୍ରଦ ଓ ପୁଷ୍କରିଣୀକୁ ଯାଆନ୍ତି । ସେ ସମୟରେ ଦଳର ନେତୃତ୍ୱ ନିଏ ଏକ ଅଭିଜ୍ଞ ଓ ବୟୋଜ୍ୟେଷ୍ଠ ସଭ୍ୟ । ସେ ସବୁଠୁ ଆଗରେ ରହେ ଓ ଲୁଚିଛପି ରହିଥିବା ସିଂହ ଆଦି ଶତ୍ରୁଙ୍କୁ ଠାବ କରି ଦଳକୁ ସୁରକ୍ଷିତ କରିବାପାଇଁ ଚେଷ୍ଟା କରେ । ସିଂହ ଜେବ୍ରାର ପ୍ରଧାନ ଶତ୍ରୁ । ଆଫ୍ରିକୀୟ ଶିକାରୀ କୁକୁର ମଧ ତା'ଉପରେ ଆକ୍ରମଣ କରିଥାଏ । ଜେବ୍ରା ଚମଡ଼ା ଚଢ଼ା ଦରରେ ବିକ୍ରି ହେଉଥିବାରୁ ମଣିଷ ବହୁ ସଂଖ୍ୟାରେ ଜେବ୍ରା ଶିକାର କରୁଛି । ତେଣୁ ସେମାନଙ୍କ ସଂଖ୍ୟା କମିଯାଉଛି ।

ଗ୍ରେଭି, ଗ୍ରାଣ୍ଟ ବା ବୁର୍‌କେଲ୍ ଓ ପାର୍ବତ୍ୟ ଜେବ୍ରା ନାମକ ତିନି ପ୍ରକାରର ଜେବ୍ରା ଦେଖାଯାଆନ୍ତି । ଗ୍ରେଭି ସବୁଠାରୁ ବଡ଼ । ପାର୍ବତ୍ୟ ଜେବ୍ରା ସବୁଠାରୁ ଛୋଟ । ଏ ଦୁହିଁଙ୍କ ପେଟ ପାଖରେ କଳାଦାଗ ନ ଥାଏ । କିନ୍ତୁ ଗ୍ରାଣ୍ଟର ପେଟ ପାଖରେ କଳା ଧଳା ଦାଗ ଦେଖାଯାଏ । ଆମର ଯେମିତି ପ୍ରତ୍ୟେକ ଟିପଚିହ୍ନ ଯେକୌଣସି ଅନ୍ୟ ଟିପଚିହ୍ନଠାରୁ ଭିନ୍ନ, ସେମିତି ଗୋଟିଏ ଜେବ୍ରାର କଳା ଧଳା ଦାଗର ସମାବେଶ ଅନ୍ୟ ଯେକୌଣସି ଜେବ୍ରାଠାରୁ ଭିନ୍ନ । ଏହା ସୃଷ୍ଟିର ଏକ ବୈଚିତ୍ର୍ୟ । ଗବେଷଣାରୁ ଆହୁରି ଜଣାଯାଇଛି ଯେ, କଳାଦାଗ ତଳେ ଶରୀରର ତାପମାତ୍ରା ଧଳାଦାଗ ତଳର ତାପମାତ୍ରା ଠାରୁ ଅଧିକ ।

ଥରକେ ମାତ୍ର ଗୋଟିଏ ଛୁଆ ଜନ୍ମ ହୋଇଥାଏ । ଜନ୍ମ ହେବାର ପାଞ୍ଚ ଦଶ ମିନିଟ୍ ଭିତରେ ହିଁ ଆସ୍ତେ ଆସ୍ତେ ଚାଲିବା ଆରମ୍ଭ କରିଥାଏ ଏବଂ ପ୍ରାୟ ଏକ ଘଣ୍ଟା ଭିତରେ ମା' ପାଖରୁ କ୍ଷୀର ଖାଇବା ପାଇଁ "ଅଳି" କରିବା ଆରମ୍ଭ କରିଦିଏ । ଜେବ୍ରାର ଆୟୁଷ ପ୍ରାୟ ପଚିଶ ବର୍ଷ ।

# ଜିରାଫ୍ (GIRAFFE)

ଆଫ୍ରିକା ମହାଦେଶର ଶୁଷ୍କ ତୃଣଭୂମିରେ ଜିରାଫ୍ ବାସ କରେ । ଉଚ୍ଚତାରେ ସେ ଯେକୌଣସି ଜୀବଠାରୁ ଅଧିକ । ତା'ର ଉଚ୍ଚତା ପ୍ରାୟ ୧୯ ଫୁଟ । କିନ୍ତୁ କାନ୍ଧ ପାଖର ଉଚ୍ଚତା ୧୦ ଫୁଟ କମ୍ । ବେକ ପ୍ରାୟ ୭ ଫୁଟ ଲମ୍ବା । ଲମ୍ବା ବେକ ଓ ଲମ୍ବା ଆଗଗୋଡ଼ ଲାଗି ତା'ର ଉଚ୍ଚତା ଏତେ ବେଶୀ ହୋଇପାରିଛି । ଜିରାଫ୍‌ର ଜିଭ ମଧ୍ୟ ବେଶ୍ ଲମ୍ବା । ଏହିସବୁ ଦୃଷ୍ଟିରୁ ସେ ସହଜରେ ବଡ଼ ବଡ଼ ଗଛରୁ କଅଁଳିଆ ପତ୍ର ଖାଦ୍ୟ ରୂପେ ସଂଗ୍ରହ କରିଥାଏ । ଖାଦ୍ୟ ପାଇଁ ତାକୁ ଅନ୍ୟ ତୃଣଭୋଜି ପଶୁଙ୍କ ସହ ପ୍ରତିଯୋଗିତା କରିବାକୁ ପଡ଼େ ନାହିଁ । ଏହାଛଡ଼ା ଶତ୍ରୁକୁ ସହଜରେ ଠାବ କରିବା ପାଇଁ ମଧ୍ୟ ତା'ର ଉଚ୍ଚତା ସାହାଯ୍ୟ କରିଥାଏ । ତେବେ ଘାସ ଚରିବା ଓ ପାଣି ପିଇବା ତା ପକ୍ଷେ ସହଜ ନୁହେଁ । ତେଣୁ ଅଧିକ ଦିନ ଧରି ସେ ପାଣି ନ ପିଇ ବଞ୍ଚି ରହିପାରେ ।

ଜିରାଫ୍‌ର ଆଖି ଦୁଇଟି ବେଶ୍ ବଡ଼ ଏବଂ ଦୃଷ୍ଟିଶକ୍ତି ବେଶ୍ ପ୍ରଖର । ମୁଣ୍ଡ ଉପରେ ଥିବା ଶିଙ୍ଗ ଦୁଇଟି ବେଶ୍ ଛୋଟ ଓ ଏହା ନରମ ଚମଡ଼ା ଦ୍ୱାରା ଆବୃତ । ତେଣୁ ଏହା ଯୁଦ୍ଧ କରିବା ପାଇଁ ଅନୁପଯୁକ୍ତ । ଗାଈ, ଛେଳି ଓ ହରିଣ ପରି ତା'ର ଗୋଡ଼ରେ ଖୁରା ଅଛି । ଖୁରା ଦ୍ୱାରା ନାତ ଓ ଗୋଇଠା ମାରି ଓ ମୁଣ୍ଡ ଦ୍ୱାରା ଆଘାତ କରି ଜିରାଫ୍ ସହଜରେ ଶତ୍ରୁକୁ କାବୁ କରିଥାଏ । ଗାଈଗୋରୁଙ୍କ ପରି ସେ ମଧ୍ୟ ରୋମନ୍ଥନ କରିଥାଏ ।

ଜିରାଫ ଆସ୍ତେ ଆସ୍ତେ ଚାଲେ । କେବେହେଲେ ବ୍ୟସ୍ତ ଥିଲାପରି ଜଣାଯାଏ ନାହିଁ । କେବେ ଶତ୍ରୁ କବଳରୁ ନିଜକୁ ରକ୍ଷା କରିବା ପାଇଁ ସେ ବେଶ୍ ଜୋର୍‌ରେ ଦୌଡ଼ିପାରେ । ତାର ଦୌଡ଼ ବେଶ୍ ବିଚିତ୍ର । ଧାଇଁବା ବେଳେ ଜଣାଯାଏ ଯେମିତି ସେ ପବନରେ ଭାସି ଭାସି ଯାଉଛି । ସେମାନେ ସାଧାରଣତଃ ଦଳବଦ୍ଧ ହୋଇ ରହନ୍ତି । ଜିରାଫର ସ୍ୱରପେଟିକାରେ ସ୍ୱର ରଜ୍ଜୁ ନ ଥାଏ, ତେଣୁ ସେମାନେ ମୂକ । କିନ୍ତୁ ଥରେ ଥରେ ଯନ୍ତ୍ରଣା ହେଲେ ସେମାନେ କୁନ୍ଥେଇ ହୋଇଥାନ୍ତି ।

ପ୍ରାୟ ପନ୍ଦର ମାସ ମା' ପେଟରେ ରହିବା ପରେ ଯେକୌଣସି ଋତୁରେ ଥରକେ ଗୋଟିଏ କିମ୍ବା ଦୁଇଟି ଛୁଆ ଜନ୍ମ ହୋଇଥାଏ । ମୂକ ହୋଇଥିବାରୁ ସେ କାନ୍ଦିପାରେ ନାହିଁ ।

ଆଫ୍ରିକାର ବହୁ ଅଭୟାରଣ୍ୟରେ ଜିରାଫ୍‌କୁ ଏବେ ସୁରକ୍ଷିତ ଭାବେ ରଖାଯାଇଛି ।

# ଗରିଲା (GORILLA)

ଗରିଲା ଓ ସିଂପାଞ୍ଜି ମଣିଷର ନିକଟତମ ବନ୍ଧୁ । ଏମାନେ ଲାଙ୍ଗୁଡ଼ ଶୂନ୍ୟ ବାନର ଜାତୀୟ ଜୀବ । ଏ ପ୍ରକାର ପଶୁମାନଙ୍କ ଭିତରେ ଗରିଲା ସବୁଠାରୁ ବଡ଼ । ଚେହେରା ଦୃଷ୍ଟିରୁ ମଧ୍ୟ ସେ ଖୁବ୍ ଭୟଙ୍କର । ତା'ର ଉଚ୍ଚତା ପ୍ରାୟ ପାଞ୍ଚରୁ ଛଅ ଫୁଟ ଓ ଓଜନ ଦୁଇଶହ କିଲୋଗ୍ରାମ୍‌ରୁ ବେଶୀ । ମାଈ ଗରିଲାର ଓଜନ ପ୍ରାୟ ଏକଶହ କିଲୋଗ୍ରାମ । ଗରିଲାର ଆଗ ଗୋଡ଼ ଦୁଇଟି ପଛଗୋଡ଼ ଠାରୁ ବଡ଼ । କିନ୍ତୁ ଏହା ସିଂପାଞ୍ଜି ଓ ଅନ୍ୟ ବାନରଙ୍କ ଆଗଗୋଡ଼ ତୁଳନାରେ ଛୋଟ । ଆଙ୍ଗୁଠିର ପବ ଉପରେ ଭାର ଦେଇ ଏମାନେ ଚଳେ ବସନ୍ତି । ଆଙ୍ଗୁଠିଗୁଡ଼ିକ ମଧ୍ୟ ବେଶ୍ ଲମ୍ବା । ଭ୍ରୂଲତା ଖୁବ୍ ଘଞ୍ଚ ଓ ନାକ ଚେପ୍‌ଟା ।

ଦୁଇ ପ୍ରକାରର ଗରିଲା ଦେଖାଯାଆନ୍ତି । ଗୋଟିଏ ପାର୍ବତ୍ୟ ଗରିଲା । ତା'ର ରଙ୍ଗ ପାଉଁଶିଆ । ଆରଟି ସମତଳ ଅଞ୍ଚଳରେ ବାସକରେ ଓ ତା'ର ରଙ୍ଗ କଳା । ଉଭୟେ ଆଫ୍ରିକାରେ ବାସ କରନ୍ତି । ସେମାନେ ଶାକାହାରୀ ଏବଂ ଫଳ, ମୂଳ ଓ ପତ୍ର ଇତ୍ୟାଦି ସେମାନଙ୍କର ମୁଖ୍ୟ ଖାଦ୍ୟ । ଭୟାନକ ଦେଖାଯାଉଥିଲେ ସୁଦ୍ଧା ଗରିଲାର ସ୍ୱଭାବ ନମ୍ର । ଅନ୍ୟମାନଙ୍କୁ ଡରାଇବା ପାଇଁ ଥରେ ଥରେ ସେ ରାଗିଥିବା ପରି ବ୍ୟବହାର କରେ । ଗଛ ଡାଳ ଭାଙ୍ଗି ଶତ୍ରୁ ଆଡ଼କୁ ଫୋପାଡ଼ି ନିଜର ବିରକ୍ତି ପ୍ରକାଶ କରିଥାଏ । ଅଧିକ ଉତ୍ତେଜିତ ହେଲେ ନିଜ ଛାତିକୁ ବାଡ଼େଇ ହୋଇ ଖୁବ୍ ଯୋର୍‌ରେ ଗର୍ଜନ କରେ । ଏହି ଭୟଙ୍କର ଗର୍ଜନ ଶୁଣିବା ପରେ ଶତ୍ରୁ ତା' ପାଖରେ ବେଶୀ ସମୟ ରହିବାକୁ ସାହସ କରେ ନାହିଁ । ଗରିଲା ଅନ୍ୟମାନଙ୍କର କ୍ଷତି କରୁ ନ ଥିବା ଦୃଷ୍ଟିରୁ ଓ ସେ ମାଂସାସୀ ହୋଇ ନ ଥିବାରୁ ତାକୁ ଜଙ୍ଗଲର ''ଭଦ୍ର ରାକ୍ଷସ'' କୁହାଯାଏ ।

ଆୟତନ ଦୃଷ୍ଟିରୁ ଗରିଲାର ମସ୍ତିଷ୍କ ଆମ ମସ୍ତିଷ୍କଠାରୁ ସାମାନ୍ୟ ଛୋଟ । ସେମାନଙ୍କ ଆଚାର ବ୍ୟବହାର ଅନେକଟା ମଣିଷ ପରି । ନିଦରୁ ଉଠିଲାବେଳେ ସେମାନେ ହାଇମାରନ୍ତି ଓ ଭିଡ଼ିମୋଡ଼ି ହୁଅନ୍ତି । ତା' ଛଡ଼ା ଉଭୟ ହାତ ପାପୁଲି ଓ ପାଦ ଦ୍ୱାରା ବିଭିନ୍ନ ଜିନିଷ ମୁଠେଇ ଧରିପାରନ୍ତି ।

ଗରିଲା ନିଜ ପରିବାର ସହ ରହେ । ପରିବାର ସଭ୍ୟସଂଖ୍ୟା ଛ'ରୁ ସତର । ଗୋଟିଏ ଅଣ୍ଡିରା, ତା'ର କେତୋଟି ''ସ୍ତ୍ରୀ'' ଓ ଛୁଆମାନଙ୍କୁ ନେଇ ତା'ର ପରିବାର । ଗରିଲା ପରିବାର ଗଛରେ ମଞ୍ଚା ତିଆରି କରି ରାତ୍ରିଯାପନ କରନ୍ତି । ପରିବାରର ମୁଖିଆ ପୃଥୁଳକାୟ ହୋଇଥିବାରୁ ଗଛମୂଳେ ଆଶ୍ରୟ ନିଏ । ତା'ର ନିର୍ଦ୍ଦେଶ ଅନୁଯାୟୀ ପରିବାରର ଗତିବିଧି ସମସ୍ତ କାର୍ଯ୍ୟକ୍ରମ ନିୟନ୍ତ୍ରିତ ହୋଇଥାଏ ।

ପ୍ରାୟ ଆଠ ନ' ମାସ ଜରାୟୁ ଜୀବନ ପରେ ଥରକେ ଗୋଟିଏ ଛୁଆ ଜନ୍ମ ହୁଏ । ଗରିଲାର ଆୟୁଷ ପ୍ରାୟ କୋଡ଼ିଏରୁ ପଚିଶ ବର୍ଷ । ଚିଡ଼ିଆଖାନା ବା ଅଭୟାରଣ୍ୟରେ ଥିବା ଗରିଲାଙ୍କ ଆୟୁଷ ପଞ୍ଚତିରିଶରୁ ପଚାଶ ବର୍ଷ ।

ନୀଳ ତିମି



ଶୁକ୍ର ତିମି



ବୋତଲମୁହାଁ ତିମି



କୁଜପିଠିଆ ତିମି



ଥଣ୍ଟିଆ ତିମି



# ତିମି (WHALE)

ତିମିକୁ ଆମେ ମାଛ ବୋଲି କହୁଥିଲେ ସୁଦ୍ଧା ଏହା ମାଛ ନୁହେଁ, ବରଂ ଏକ ସ୍ତନ୍ୟପାୟୀ ପ୍ରାଣୀ । ପାଣିରେ ରହୁଥିବାରୁ ତା ଶରୀରରେ ମାଛ ପରି କେତେକ ଲକ୍ଷଣ ଦେଖାଯାଏ । ନୀଳ ତିମି, ଶୁକ୍ର ତିମି, ହନ୍ତକ ତିମି ଆଦି ବହୁ ପ୍ରକାରର ତିମି ପୃଥିବୀର ବିଭିନ୍ନ ସମୁଦ୍ରରେ ବାସ କରୁଛନ୍ତି । ଯେକୌଣସି ଜୀବଠାରୁ, ଏପରିକି ଡାଇନୋସାର୍‌ଠାରୁ ମଧ୍ୟ ତିମି ବଡ଼ । ସବୁଠାରୁ ବଡ଼ ତିମି ହେଲା ନୀଳ ତିମି । ତା'ର ଦୈର୍ଘ୍ୟ ପ୍ରାୟ ୧୦୦ ଫୁଟ ଏବଂ ଓଜନ ୧୪୦ ଟନ୍— ଅର୍ଥାତ୍ ଏହା ପ୍ରାୟ ୩୦ ଗୋଟି ହାତୀ ସହ ସମାନ । ଭାରତ ମହାସାଗରରେ ନୀଳତିମି ଜାତୀୟ ଦୁଇ ତିନି ପ୍ରକାର ତିମି ବାସ କରନ୍ତି ।

ତିମିର ଆଗଗୋଡ଼ ଦୁଇଟି ଡେଣା ପରି । ବେକ, ପଛଗୋଡ଼ ଓ କେଶହୀନ ଶରୀର ସନ୍ତରଣ ପାଇଁ ଉପଯୁକ୍ତ । ତା'ଛଡ଼ା ଲାଙ୍ଗୁଡ଼ ଚେପ୍‌ଟା ଓ ସନ୍ତରଣରେ ସକ୍ରିୟ ଅଂଶଗ୍ରହଣ କରିଥାଏ । ତିମିର ନାକ, ମୁଣ୍ଡର ଉପର ଭାଗରେ ଥାଏ । ତା' ସହ ବ୍ଲୋହୋଲ୍ ବା "ଫୁଙ୍କନଳୀ" ପରି ଗୋଟିଏ ଇନ୍ଦ୍ରିୟ ଲାଗିଥାଏ । ଏହା ସାହାଯ୍ୟରେ ପାଣିରେ ବୁଡ଼ିବା ପୂର୍ବରୁ ସେ ପ୍ରଚୁର ଅମ୍ଳଜାନ ଫୁସ୍‌ଫୁସ୍ ଭିତରକୁ ନେଇଥାଏ । ତେଣୁ ତିମି ଘଣ୍ଟାଏ ବା ତା'ଠାରୁ ଅଧିକ ସମୟ ପାଣିରେ ବୁଡ଼ି ରହିପାରେ । ପାଣି ଉପରକୁ ଉଠିବାବେଳେ ଫୁସ୍‌ଫୁସ୍‌ରୁ ଗରମ ପବନ ବାହାରକୁ ଆସେ । ଏହା ଥଣ୍ଡାହୁଏ ଓ ଏକ ଜେଟ୍ ଆକାରରେ ଉପରକୁ ଉଠେ । ତିମି ଚମଡ଼ା ତଳେ ଚର୍ବିର ଏକ ମୋଟା ଆସ୍ତର ଥାଏ । ଏହା ତାକୁ ଥଣ୍ଡାରୁ ରକ୍ଷା କରେ । ଏଥିରୁ ପ୍ରଚୁର ତେଲ ମିଳେ । ତେଣୁ ମଣିଷ ସବୁବେଳେ ତିମି ଶିକାର କରିବାରେ ଆଗ୍ରହୀ ।

ତିମିମାନେ ସାଧାରଣତଃ ଦଳବଦ୍ଧ ହୋଇ ରହନ୍ତି ଓ ବିପଦବେଳେ ପରସ୍ପରକୁ ସାହାଯ୍ୟ କରନ୍ତି । ଛୋଟ ବଡ଼ ମାଛ ଏବଂ ଅନ୍ୟ ବଡ଼ ଓ ସୂକ୍ଷ୍ମ ସାମୁଦ୍ରିକ ଜୀବ ତିମିର ମୁଖ୍ୟ ଖାଦ୍ୟ । ଶବ୍ଦତରଙ୍ଗ ଜରିଆରେ ତିମି ପାଣିର ଗଭୀରତା ମାପେ, ଖାଦ୍ୟ ଠାବ କରେ ଓ ଅନ୍ୟ ତିମିଙ୍କ ସହ ଯୋଗାଯୋଗ କରେ ।

ଥରକେ ଗୋଟିଏ ଛୁଆ ଜନ୍ମ ହୁଏ । ଜନ୍ମ ହେବାର ଦିନକ ଭିତରେ ଛୁଆ ମା' କ୍ଷୀର ଖାଇବା ଆରମ୍ଭ କରେ । ପ୍ରାୟ ଦୁଇ ମାସରୁ ସାତମାସ ଯାଏ ମା' ଛୁଆର ହେପାଜତ କରେ । ତିମିର ଆୟୁଷ ପ୍ରାୟ କୋଡ଼ିଏ ବର୍ଷ ।